




ନମଲ ଉଦ୍ଭ୍ରାନ୍ତ ପ୍ରେମର ଉଚ୍ଛ୍ୱାସ ମିଳନ-
ସ୍ଥଳରେ ଉଦ୍ବୋଧିତ ପ୍ରୀତିପାଶରି ପବିତ୍ର
କରକମଳରେ ଏହି କ୍ଷୁଦ୍ର ଗ୍ରନ୍ଥଟି ଅର୍ପିତ
ହେଲ । ଇତି ।—

ଲଳିତ ଲତିକା ଧୀରେ    ସୁଷମା ଗହନେ
କମ୍ପୁଥାଏ ପଲ୍ଲବ ବ୍ୟଜନ ;
ଧବଳ ତାରକା ତେବେ    ତୁଚ୍ଛ ନୀଳାମ୍ବରେ
ଶୋଭା ମୃଗ କରେକି ଭ୍ରମଣ ?

ସ୍ମିତ ଧନ୍ୟ ବକ୍ଷେ ଧୀର    ନଦୀ ଜଳବେଣୀ
ଦେଖି ନରେ ରମ୍ୟ ହରିତାଳୀ
ସୁନୀଲ ଗଗନେ କିବା    ଚୁମ୍ବନେ ଲୁଣ୍ଠୁଳ
ଅମୀୟ ଝରଣା ଢଏ ଢାଳ ।

ପଲ୍ଲବ-ଶ୍ୟାମଳ ବୃନ୍ତୁ    କୁସୁମିତ କୁଞ୍ଜେ
ଲୁଟେମଧୁ ବିହଙ୍ଗ ସଙ୍ଗୀତ ;
ପ୍ରଫୁଲ୍ଲ ପାଦପ କୋଳେ    ଶୋଭିତ ଲତିକା
ଲତା ପୁଣି ମୂଳେ କୁସୁମିତ ।

ଏହିମତେ ନବ ନବ ଛବି ଆବରିଲେ
ପ୍ରକୃତିର ଲାଗେ ଅଭିନୟ ;
କିନ୍ତୁ ଆଜି ଏକି ବେଶେ ଦିଶିଲେ ପ୍ରକୃତି,
କଥା ଥିଲା ଦିଶୁଥିବା ମଧୁ ?

ଏହିତ ପ୍ରଦୋଷ ଲଗ୍ନ ଛବି ମନୋହର
ଆଜି କିଆଁ ଏମନ ସ୍ତବଧ !
କାହିଁ ସେ ଦୂରନ୍ତ ବନ୍ଧୁ ମୃଦୁଳ ହିଲ୍ଲୋଳ,
ଥରୁଥାନେ ଶ୍ୟାମଳ ଦୂଷଣ ?

ନଳିନୀ ମୁଦିଲା ଆଜି ଦୁଃଖେ ନତ ମୁଖୀ
କୋରକିତ ମଲ୍ଲିକା ମଳିନ
ଲତିକା ମୂଦେଇ ଫଣି ଲଜ୍ଜେ ଥରହର
ଭାବନାର ନାହିଁ କାହିଁ ଚିହ୍ନ ।

ଏ ମହା ଭୀଷଣ ଦୃଶ୍ୟ    କହଇ ସଙ୍ଗୀତ
ଦେଇଅଛୁ ଧନ୍ୟ ଧାମୁଁ ଚଳି
କରୁ କୁଟେ ଥରେ ଥରେ    ବନ୍ଧୁ ଭୂଇ କର୍ଣ୍ଣେ
ଦୂରଦେଶୁଁ ଲେଉଣ୍ଡାର ରଡ଼ି ।

ଶ୍ରାବଣ ମୂଷଳଧାର    ଝରେ ଅବିରତ
ଶୋକାଭୂଜ ଭଣ୍ଡିଲ ଅବଶ ;
ଚପଳା ଦେଖାଏ ଛଟା    କ୍ଷଣେ କ୍ଷଣେ ନଭେ
ଘଡ଼େ ପୁଣି ଭୀମ ବଜ୍ରଧ୍ୱନି ।

ଚପଳା ଦ୍ରୁ ବୃଷ୍ଟି ନିନା    ଯୋଗ୍ୟ ଏ ସମସ୍ତେ
ଯୋଗ୍ୟ ନିନା ଭୀମବଜ୍ର ନାଦ !
ଜଳିବାଲି ଶୋକଚର୍ଚ୍ଚିଁ    କେଉଁ ଗୁଣେ ଆଜି
ଦେଖାଇବ ଜାଳ ଦନ୍ତୁପଦ ?

ଏବେ ଏ ଶ୍ମଶାନ ତାଳ      ଚହୁଁ ଅମା ଭୟା
ଦେଖେ ନାହିଁ ଜନପ୍ରାଣୀ ଛଇ
ନାହିଁ କାହିଁ ଆଉ କିଛି      ସକଳ ଅଦୃଶ୍ୟ
ଏକା ଶ୍ୟାମ ଏ ତାଣ୍ଡବ ଭିନ୍ନ ।

● ● ● ●

ବିଶ୍ୱ ଶ୍ୟାମ ବସ୍ତ୍ରିକା      ଦ୍ୱାରେ ତାର ପ୍ରାଣେ
କେଉଁ ବଳେ ଅଲଭ୍ୟ ଅମୃତ ;
ପ୍ରକୃତି ତାଣ୍ଡବ ନୃତ୍ୟ ;      ଅଲକ୍ଷିତ ପ୍ରଭାବେ
ଭରେ ତାକୁ ଆନନ୍ଦେ ଆପ୍ଳୁତ ।

ମୃତ୍ୟୁ ଖେଳେ ପ୍ରଭ      ନାହିଁ ଡରେ ଲକ୍ଷ
ଭୟ ନାହିଁ ମନେ ତାର ଡରେ,
ତାରଲକ୍ଷ ତାକୁ ଜଣା      ସେ ଯେ ଆହ୍ଲାଦିତ
ମୁଣ୍ଡ ତାର ଶ୍ମଶାନ ଆବରେ !

କର୍ଦ୍ଦମ, କଙ୍କର ଅବା    କଣ୍ଟକିତ ବନ,
ପ୍ରକୃତିର ଘୋଷଣା ଦୃଢ଼ ଭୂଇଁ
ଲଙ୍ଘିଲେ ଅଦମ୍ୟ ଭାବେ    ସାହସ ସମ୍ମୁଖେ
ଯାଉଛନ୍ତି ଅଲକ୍ଷିତେ ଢଇଁ ।

ଛିନ୍ନଭିନ୍ନ ମିଶ୍ର ବସ୍ତ୍ର    ଧୂଳିର ଲୋହିତ
ବିନ୍ଧିତ ବା ଶରେ କଳେବର
ତେବେ କିନ୍ତୁ ଜଣାନାହିଁ    ନ ଭିଜ୍ଞ କଷ୍ଟରେ
ସେ ଯେ ରହେ ଅଦମ୍ଭ ନର !

ସୁମଧୁର ସ୍ମିତ ରେଖା    ଥାଉଛି ଅଧରେ
ଗଢ଼ ଘଟେ ଦୁଏ ଓଷ୍ଠତର ;
ଯେତେ ସେ ଯାଉଛି କିନ୍ତୁ    ଘୃଣେଲେ ତାଠାରୁ
ଦୂଏ ଲକ୍ଷ ହେଲେ ଦୂରତର ।

ଦସ୍ୟୁ ନାହିଁ ପଥ ଭରେ,  କି ଅଭିଜ୍ଞ ବଳେ
ଜେଉ ନାହିଁ ଲଭେ ପଥ ଜୟ;
ତାର ଲକ୍ଷ ତାର ପ୍ରାଣେ  ଦେଶନ୍ତୁ ତାମସେ
ସମୁଜ୍ଜ୍ୱଳ ଲକ୍ଷ୍ୟ ଧ୍ରୁବତାର ।

ଗହନ ବିପିନ ଏବେ  ଶାର୍ଦ୍ଦୁଳ ସଙ୍କୁଳ
ଅମା ଅନ୍ଧକାରେ ପଣି ଭୂଇଁ !
ଭାରତକୁ ଚନ୍ଦ୍ରାଲୋକ  ଶଙ୍କରାଣୀ ଯେବେ
ମାନବକୁ ବନ୍ଧୁର ଲୁଛି ।

ସ୍ୱଚ୍ଛଳ ତାଣ୍ଡବ ନୃତ୍ୟ  ପ୍ରବଳେ ଯେବକ
କରଇ ଦେବତେ ସ୍ମୃତି ଶ୍ରିତ ରେଖା,
ଶରୀର ସ୍ୱବାର ରୋଷ  ପ୍ରଥିଲ ବଦନେ
ଆଶା ନେଇ ତ ଦଏ ପୁଣି ଦେଖା ।

ବିଜନ ଗହନ ବନେ    ପ୍ରଫୁଲ୍ଲ ମାନସେ
ପ୍ରବେଶିଣ ଶ୍ରୀପତିଙ୍କୁ ଭେଟି
କଣ୍ଟକିତ ଧନୁର୍ଦୃଷ୍ଟେ    ପାଶ୍ୱାରେ ପଡ଼ିଲ
ଲୁଣ୍ଠିଲି ମନ ବୁଡ଼ିଗଲେ ।

ଥରେକେ କହିଲ    "କିରେ ତୁ ପ୍ରେମ ପଥର
ତୁଳସୀଆ ଏକା ଅନ୍ତର୍ଯ୍ୟାମୀ ?
"ପ୍ରାଣବନ୍ଧୁ ଦେହ ଦେଲେ    ବଞ୍ଚିବ ମୁହୂର୍ତ୍ତେ
ନ ପାରିଲୁ ତୁହି ଏହା ଜାଣି ?

"ଯାହା ଦେଖେଁ ତୋର ରୂପ    ପ୍ରଭାତରେ ଚକ୍ଷୁ
ଖାଣି ଆଣୁ ଖଣକେ ତୁ ମନ
"ତୁ ମୋର ପରାଣବନ୍ଧୁ    ପରାଣର କେନ୍ଦ୍ର
ତୁ ଏ ମାଟି ଘରରେ ଜୀବନ ।

“ଏ ବନେ ଆଜିକି ତୋତେ   ମୁଁ ଛାଡ଼ି ପାରିବି
ନେଇଯିବି ତୋତେ ଆଜି ସଙ୍ଗେ
“ତୋ ସଙ୍ଗେ ରହିବି ସଦା   ବୁଲିବି ତୋ ସଙ୍ଗେ
ଖେଳିବି ତୋ ସଙ୍ଗେ କେତେ ରଙ୍ଗେ ।

“ଜାଣେ ମୁଁ ମୋହର ତୁହି, ମୁଁ ପୁଣି ତୋହର,
ଏ ପିଣ୍ଡର ତୁହିଁ ଜୀବନ
“ତୋ ମୋହନ ରୂପଛଟା   ଏ ଯୋଡ଼ା ଜୀବନେ
ଭରୁ ସୁଖ ଅମିୟ ରଞ୍ଜନ ।”

ଏହା କହି ବକ୍ଷେ ଚାପି   ସେ ପ୍ରାଣ ପିତୁଳା
ବାହୁଡ଼ିଲା ଘର କ୍ଷିପ୍ର ପଦେ
ହୃଦ୍‌ବେଗ କ୍ଷିପ୍ର ଗତି   କ୍ଷିପ୍ରତର ହେଲା
ଉର୍ମିବେଗେ ଆନନ୍ଦ ସମ୍ପଦେ ।

ଶୂନ୍ୟ ଏ ସଂସାର, ଶୂନ୍ୟ ବିଶ୍ୱ, ଚରାଚର
ମହାଶୂନ୍ୟ ହେଲା ଜ୍ୟୋତିର୍ମୟ
ଅନନ୍ତ ଜ୍ୟୋତିରେ ପ୍ରାଣ- ଜ୍ୟୋତି ମିଶିଗଲା
ହେଲ ଖଣେ ସବୁ ଜ୍ୟୋତିର୍ମୟ ।

ଜ୍ୟୋତିର ଝଲକାରେ ଜ୍ୟୋତି ଅନନ୍ତ ସେ ଜ୍ୟୋତି
ନାହିଁ ବିଶ୍ୱ, ନାହିଁ ଚରାଚର
ଜଣାଉନ ନାହିଁ କିଛି ସକଳ ସମାନ
ପ୍ରେମେ ଶୂନ୍ୟ ମହାନ ସୁନ୍ଦର ।

ପଥେ ଦେଖି ନଦୀ, ଖଣେ ଡୁବାଦେଲି ବାର
ଖର ସ୍ରୋତା ଧାଏଁ କୂଳଲଙ୍ଘି
ଦମ୍ଭ ନାହିଁ, ଶକ୍ତି ନାହିଁ, ଡରେ ଡାକିଦେଲି
'ରଖ ଏବେ ରଖ ପ୍ରାଣପତି' ।